'ହୁଡିନି ବ୍ରଦର୍ସ' ନାମରେ ସେମାନେ ବିଭିନ୍ନ କ୍ଲବଘର ମାନଙ୍କରେ ଛୋଟକାଟିଆ ଖେଳ ପ୍ରଦର୍ଶନ କରିବାକୁ ଲାଗିଲେ । ୧୫ ମିନିଟ୍‌ର ଶୋ ପରେ " ହୁଡିନି ବ୍ରଦର୍ସର" ଶେଷ ଖେଳଟି ଥିଲା ଟ୍ରଙ୍କରେ ବନ୍ଦ ଲୋକର ଆକସ୍ମିକ କାୟା ପରିବର୍ତ୍ତନ । ୧୫ ବର୍ଷ ପୂର୍ବେ ଏହି ଖେଳଟିକୁ 'ନେଭିଲ୍ ମସ୍କେଲିନ୍" ନାମ୍ନୀ ଜଣେ ବ୍ରିଟିଶ୍ ଯାଦୁକର ଖୁବ୍ ଲୋକପ୍ରିୟ କରାଇଥିଲେ । ହୁଡିନି ଏହି ଖେଳରେ କେତେକ ପରିବର୍ତ୍ତନ କରି ଏହାକୁ ଏମିତି ଏକ ନାଟକୀୟ ଭଙ୍ଗୀ ଦେଲେ ଯାହାଦ୍ୱାରା ଏହା ଖୁବ୍ ଆଦୃତ ହେଲା । ଏହି ଖେଳର ନାମ ରଖାଗଲା - "କାୟା କଳ୍ପ" । ନିର୍ଭୁଲ ଭାବରେ ତଥା କ୍ଷୀପ୍ରଗତିରେ କାମ କରିବା ଉପରେ ଏହି ଖେଳଟିର ସଫଳତା ନିର୍ଭର କରୁଥିଲା । ଜେକବ୍ କିନ୍ତୁ ହୁଡିନିଙ୍କ ସହିତ ତାଳ ଦେଇ କାମ କରିପାରୁନଥିଲେ । ଫଳତଃ ଚାରିମାସ ପରେ ଦୁହିଁଙ୍କ ଯୋଡି ଭାଙ୍ଗିଗଲା ।

ଏହାପରେ ହୁଡିନି ନିଜ ଭାଇ ଥିଯୋଙ୍କୁ ସାଙ୍ଗ କରି ଚିକାଗୋର ୱାର୍ଲଡ କଲମ୍ବିଆନ୍ ଏକ୍ସପୋଜିସନ୍ ରେ ଖେଳ ପ୍ରଦର୍ଶନ କରିବାକୁ ଗଲେ । ସେଠାରେ ହାତକଡିରୁ ମୁକ୍ତ ହେବାର ଖେଳଟିକୁ ସେ ବାରମ୍ବାର ଅଭ୍ୟାସ କରିବାକୁ ଲାଗିଲେ ।

୧୮୯୪ ମସିହାରେ ନ୍ୟୁୟର୍କରେ ଖେଳ ପ୍ରଦର୍ଶନ କରୁଥିବା ସମୟରେ ସେ ବିବାହ କଲେ ୱିଲାନା ବ୍ରିଏଟିସ୍ ରାନେର (ଡାକନାମ ବେସ୍) ନାମକ ଜଣେ ସୁନ୍ଦରୀ ଯୁବତୀଙ୍କୁ ଯିଏକି "ଫ୍ଲୋରାଲ ସିଷ୍ଟର୍ସ" ନାମକ ନୃତ୍ୟ ଦଳର ଜଣେ ସଦସ୍ୟା ଥିଲେ ।

ହୁଡିନିଙ୍କ ଜୀବନରେ ଅସଲ ଯାଦୁଯାତ୍ରାର ଆରମ୍ଭ ହେଲା ତାଙ୍କ ବିବାହ ପରେ । ବେସ୍ ଜଣେ ଆଦର୍ଶ ସହଧର୍ମିଣୀର ସମସ୍ତ କର୍ତ୍ତବ୍ୟ କରୁଥିଲେ । ହୁଡିନି ଚାହୁଁଥିଲେ ବେସ୍ ତାଙ୍କର ସହକାରୀ ରୂପେ ଯୋଗ ଦିଅନ୍ତୁ । ଦୁହେଁ ମିଶି ନିଜର ଶୋଇବା ଘରେ ଘଣ୍ଟା ଘଣ୍ଟା ଧରି "କାୟାକଳ୍ପ"ର ଅଭ୍ୟାସ କରୁଥିଲେ ।

କିଛି ଦିନ ମଧ୍ୟରେ ହୁଡିନି ଦମ୍ପତି ସୋ ପାଇଁ ନିଜକୁ ସମ୍ପୂର୍ଣ୍ଣରୂପରେ ପ୍ରସ୍ତୁତ କରିନେଲେ । ଯେତେବେଳେ ବାକ୍ସକୁ ପରଦା ଆଢୁଆଳ କରାଯାଉଥିଲା, 'ବେସ୍' ଦର୍ଶକମାନଙ୍କୁ କହୁଥିଲେ, "ମୁଁ ୩ଥର ତାଳି ବଜାଇବା ମାତ୍ରେ ଚମତ୍କାର ହୋଇଯିବ । ସଙ୍ଗେ ସଙ୍ଗେ ବେସ୍ ପରଦା ଆଢୁଆଳକୁ ଚାଲିଯାଆନ୍ତି ଏବଂ ଦର୍ଶକ ୩ଥର ତାଳି ଶୁଣନ୍ତି । ପରଦା ଉଠିବା ମାତ୍ରେ ଲୋକେ ହୁଡିନିଙ୍କୁ ଦେଖନ୍ତି କିନ୍ତୁ ବେସ ଉଭାନ । ଏସବୁ ମାତ୍ର ୩ ସେକେଣ୍ଡରେ ଘଟି ଯାଉଥିଲା । ହୁଡିନିଙ୍କର ଉଦ୍ଦେଶ୍ୟ ପୂରଣ ହେଲା । ହୁଡିନି ଦମ୍ପତି ଏହି ଖେଳକୁ ସାରା ଆମେରିକାରେ ଦେଖାଇଲେ । ଖାଲି ସମୟରେ ସେ "ହାତକଡିରୁ ମୁକ୍ତି" ଖେଳଟିକୁ ଅଭ୍ୟାସ କରୁଥିଲେ । କଠୋର ପରିଶ୍ରମ ଏବଂ ଲଗାତାର ଅସଫଳତା ଶେଷରେ ତାଙ୍କୁ ସଫଳତା ଆଣିଦେଲା ।

୧୮୯୯ ମସିହାରେ ଚିକାଗୋର ପ୍ରଦର୍ଶନୀ ଥିଏଟର "କୋଲ୍ ଏଣ୍ଡ ମିଡିଲଟନ୍ସ"ରେ କେତେକ ସପ୍ତାହ ମାତ୍ର ଶୋ କରିବା ପାଇଁ ସେ ଅନୁବନ୍ଧିତ ହେଲେ । ସେଠାରେ ତାଙ୍କର ଖେଳ ବେଶ୍ ଆଦୃତ ହେଲା । ଏହାପରେ ହୁଡିନି ପଛକୁ ଫେରି ଚାହିଁ ନାହାଁନ୍ତି । ସେ ବାହାରିଗଲେ ୟୁରୋପ ପରିଭ୍ରମଣରେ । "ହାତକଡିର ବାଦଶାହା" ନାମରେ ସାରା ୟୁରୋପରେ ସେ ବିପୁଳ ସଫଳତା ହାସଲ କଲେ । ସେ ଜର୍ମାନୀର ଜେଲ୍ ହେଉ ବା ଆମେରିକାର ବିଶାଳ ଲୌହ ବଏଲର, କୌଣସିଟି ତାଙ୍କୁ ବନ୍ଦୀ କରି ପାରିନଥିଲା । ଏହି ଦିନ ଗୁଡିକ ତାଙ୍କ ଜୀବନର ସବୁଠୁ ହର୍ଷୋଲ୍ଲାସ ପୂର୍ଣ୍ଣ ଦିନ ଥିଲା ।

ବର୍ଲିନରେ ସେ ଦେଖାଇଲେ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଖେଳ "ଚାଇନିଜ୍ ୱାଟର ଟର୍‌ଚର ସେଲ୍" ବା "ଚୀନା ଜଳ ଯାତନା ପାତ୍ର" । ଏହି ଖେଳ ଅପାର ସଫଳତା ଲାଭକଲା ବେଳେ ହୁଡିନିଙ୍କର ମାତୃ ବିୟୋଗ ଘଟିଲା । ଏହା ଦ୍ୱାରା ସେ ବହୁତ ଭାଙ୍ଗି ପଡିଲେ ।

---

* " There is a vast difference between telling how a trick is done and teaching how to do it." - Prof. Hoffman (Angelo Lewis) in 'Modern Magic'.

ଏହିଠାରୁ ତାଙ୍କ ଜୀବନର ଏକ ଅଦ୍ଭୁତ ଅଧ୍ୟାୟର ଆରମ୍ଭ ହେଲା । ସେ ଲଗାତାର ପ୍ରେତାତ୍ମା ମାନଙ୍କୁ ଆବାହନ କରାଯାଉଥିବା ବୈଠକ ମାନଙ୍କରେ ଯୋଗଦେବାକୁ ଲାଗିଲେ । କାରଣ, ତାଙ୍କୁ ଲାଗୁଥିଲା, ଯେପରି ତାଙ୍କ ମା' ମୃତ୍ୟୁ ଶଯ୍ୟାରେ ତାଙ୍କୁ କିଛି କହିବାକୁ ଯାଇ କହିପାରିନାହାଁନ୍ତି । କିନ୍ତୁ କେଉଁଠି ମଧ୍ୟ ସେ ସନ୍ତୁଷ୍ଟ ଲାଭ କଲେ ନାହିଁ । ତେଣୁ ସେ ଏହି ତଥାକଥିତ ମାଧ୍ୟମ ମାନଙ୍କର ରହସ୍ୟ ଉନ୍ମୋଚନ କରିବାକୁ ଲାଗିପଡିଲେ । ଏହାଦ୍ୱାରା ''ମାଧ୍ୟମ'' ମାନେ ହୁଡିନିଙ୍କୁ ଭୟ କରିବାକୁ ଲାଗିଲେ । ତେଣୁ ସେମାନେ ହୁଡିନଙ୍କ ନାମରେ ମିଥ୍ୟାପବାଦ ପ୍ରଚାର କଲେ । ଏପଟେ ହୁଡିନିଙ୍କୁ ମଧ୍ୟ ମୃତ୍ୟୁର ଆଭାସ ମିଳୁଥିଲା । ୧୯୨୬ ମସିହା ଅକ୍ଟୋବର ୭ରେ ବେସ୍‌ଙ୍କର ଦେହ ଖରାପ ହେଲା ।

ଅଲବାନୀରେ ଶୋ ପ୍ରଦର୍ଶନ ସମୟରେ ତାଙ୍କର ଗୋଇଠି ହାଡ ଭାଙ୍ଗିଗଲା । ଡାକ୍ତରଙ୍କ ବାରଣ ସତ୍ତ୍ୱେ ସେ ସପ୍ତାହ ସାରା ଶୋ ଦେବାକୁ ଲାଗିଲେ । ଅଲବାନୀପରେ ତାଙ୍କ ଦଳ ମଣ୍ଟ୍ରିଲ ଯାତ୍ରାକଲେ । ମଣ୍ଟ୍ରିଲର ପ୍ରିନ୍‌ସେସ ଥିଏଟରରେ ତାଙ୍କ କାର୍ଯ୍ୟକ୍ରମ ଚାଲିଥିବା ସମୟରେ ଦିନେ ସେ ମେକ୍‌ଗିଲ୍ ବିଶ୍ୱବିଦ୍ୟାଳୟକୁ ଭାଷଣ ଦେବାକୁ ଯାଇଥିଲେ । ଭାଷଣ ପରେ ପିଲାମାନେ ତାଙ୍କୁ ଘେରିଗଲେ । ହୁଡିନିଙ୍କର ରେଖାଚିତ୍ର ଆଙ୍କିଥିବା ସାମୁଏଲ ନାମକ ଜଣେ ଛାତ୍ରକୁ ସେ ମଧ୍ୟ ବିଶ୍ରାମକକ୍ଷକୁ ଡାକି କିଛି ଆଳାପ କଲେ । *** ଏହି ଘଟଣା ପରେ, ଦିନେ ( ସେଦିନ ୨୨ ତାରିଖ ଶୁକ୍ରବାର) ଅପରାହ୍ନରେ ହୁଡିନି ତାଙ୍କ ଗ୍ରୀନ୍ ରୁମରେ ବସି ଚିଠିପତ୍ର ଦେଖୁଥିବାବେଳେ ସାମୁଏଲ ତାଙ୍କର 'ଜ୍ୟାକ୍ ପ୍ରାଇସ' ନାମକ ଆଉଜଣେ ସାଙ୍ଗକୁ ଧରି ହୁଡିନିଙ୍କୁ ଭେଟିଲେ । ସାମୁଏଲ ହୁଡିନିଙ୍କର ଆଉ ଏକ ଚିତ୍ର ଆଙ୍କୁଥାଆନ୍ତି, ଏତିକିବେଳେ ଗର୍ଡନ ହ୍ୱାଇଟ' ନାମକ ଆଉ ଜଣେ ଛାତ୍ର ସେଠାରେ ପହଞ୍ଚିଲା ଏବଂ ବିଭିନ୍ନ ଅଲୌକିକ ବିଷୟରେ ହୁଡିନିଙ୍କୁ ପ୍ରଶ୍ନ ପଚାରିବାକୁ ଲାଗିଲା । ଚିଠିପତ୍ର ଦେଖିବା ଅବସ୍ଥାରେ ହୁଡିନି ଉତ୍ତର ଦେଉଥାଆନ୍ତି । ଏ ମଧ୍ୟରେ ସେ ହୁଡିନିଙ୍କୁ ପଚାରିଲା, ତାଙ୍କ ପେଟକୁ ଯୋରରେ ଘୁଷା ପ୍ରହାର କଲେ ବି ସମ୍ଭାଳି ପାରିବେ ? ଅନ୍ୟମନସ୍କଭାବେ ହୁଡିନି ହଁ କହିଲେ । ସଙ୍ଗେ ସଙ୍ଗେ, ହୁଡିନି ପ୍ରସ୍ତୁତ ହେବା ପୂର୍ବରୁ ଗର୍ଡନ ହୁଡିନିଙ୍କ ପେଟରେ ଏକ ଶକ୍ତ ଘୁସା ବସାଇ ଦେଲା । *** ଏହା ପରେ ତାଙ୍କ ଦଳ ଡେଟ୍ରୋଏଟ୍ ଯାତ୍ରା କଲା । ପେଟଭିତରେ ଯନ୍ତ୍ରଣା ବଢ଼ିଚାଲିଥାଏ ।

୨୫ ତାରିଖ ସକାଳେ ତାଙ୍କୁ ହସପାତାଳରେ ଭର୍ତ୍ତିକରି ଅସ୍ତ୍ରୋପଚାର କରାଗଲା ଏବଂ ବିକୃତ ଆପେଣ୍ଡିକ୍ସଟିକୁ ବାହାର କରାଗଲା । କିନ୍ତୁ ବିଷ ଏପରି ଚରିଯାଇଥିଲା ଯେ, ଡାକ୍ତର ମାନେ ମତ ଦେଲେ ସେ ୧୨ ଘଣ୍ଟାରୁ ଅଧିକ ଜୀବିତ ରହିବେ ନାହିଁ । କିନ୍ତୁ ଏକ ସପ୍ତାହ ବ୍ୟାପି ହୁଡିନି ମୃତ୍ୟୁ ସହିତ ସଂଗ୍ରାମ କରି ଅକ୍ଟୋବର ୩୧ ତାରିଖ ଦ୍ୱିପ୍ରହରରେ ଇହଧାମରୁ ଚିରବିଦାୟ ନେଲେ ।

**ଏହି ପରି ଭାବରେ ଜଣେ କିମ୍ବଦନ୍ତୀ ପୁରୁଷଙ୍କର ଦେହାବସାନ ଘଟିଲା ।**

❑



**ବିଶ୍ୱ ପ୍ରସିଦ୍ଧ [illegible] ମାନଙ୍କ ମଧ୍ୟରେ ଅନ୍ୟତମ ''[illegible]'' ପେଶାରେ ଜଣେ ଡାକ୍ତର । ସେ ମାତ୍ର ୫ ବର୍ଷର** ହୋଇଥିବା ବେଳେ ତାଙ୍କ ମା' ତାଙ୍କୁ ମ୍ୟାଜିକ୍ ସେଟ୍‌ଟିଏ ଉପହାର ଦେଇଥିଲେ । ଆଜି ସେ ବିଶ୍ୱବିଦିତ ହେବାରେ ଉପରୋକ୍ତ ଘଟଣାଟି ସ୍ମରଣ କରିଥାନ୍ତି ।

# ସ୍ମୃତି, ଅନୁଭବ ଓ ଅନୁଭୂତି

***ସୁକେଶ ପଟ୍ଟନାୟକ***

ଘଟଣାଟି ନିହାତି ସତ । ଘଟିଥିଲା ଯେତେବେଳେ ମତେ ଆଠ ନ'ବର୍ଷ ବୟସ ।

ମୁଁ ପିଲାଦିନୁ ଯାଦୁପ୍ରେମୀ ଥିଲି ଏବଂ ଆମ ଗାଁର ବୟୋଜ୍ୟେଷ୍ଠ ମାନଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ କିଛିଟା ତାସ ମ୍ୟାଜିକ୍‌ର ଗୁପ୍ତ କୌଶଳ ପ୍ରାପ୍ତ ହୋଇଥିଲି । ସେୟାକୁ ଦେଖାଇ ମୁଁ କେବଳ ଆମ ଗାଁରେ ନୁହେଁ, ମୋ ମାମୁଁଘର ଗାଁରେ ମୋରି ବୟସର ପିଲାମାନଙ୍କୁ ଆଚମ୍ଭିତ କରାଇ ପାରୁଥିଲି । ସେଇ ଗାଁର ରବିନାରାୟଣ ନାମଧେୟ ମୋରି ବୟସର ପିଲାଟିଏ ମୋ ଯାଦୁଖେଳରେ ଏକାଧିକ ବାର ବୋକା ବନିସାରି ମୋ ଠାରୁ ଗୋଟିଏ ତାସ ମ୍ୟାଜିକର ରହସ୍ୟ ଜାଣିବା ଉଦ୍ଦେଶ୍ୟରେ ଅନୁରୋଧ କଲା ଏବଂ ପ୍ରତିବଦଳରେ ମତେ ଗୋଟିଏ ମଜାଦାୟକ ଯାଦୁଖେଳ ଶିଖାଇ ଦେବାର ଶପଥ ବି କଲା, ଅବଶ୍ୟ ଆଖି ଛୁଇଁ । ମୁଁ ତାକୁ ମୋ ତାସ୍ ମ୍ୟାଜିକ୍‌ଟି ଶିଖାଇ ଦେଲି, ସେ ମଧ ତା ମ୍ୟାଜିକ୍‌ର ମନ୍ତ୍ରଟି ଗୋଟେ କାଗଜରେ ଲେଖି ତାକୁ ଫଳପ୍ରଦ କରିବାର ସବିଶେଷ ବିବରଣୀ ମତେ ପ୍ରଦାନ କଲା । ସଂକ୍ଷେପରେ କହିଲେ ତା ଯାଦୁଖେଳଟି ଥିଲା, ସିଗାରେଟ୍ ଖୋଳ ମଧସ୍ଥ ଜରିର ଟୁକୁଡା ଅଂଶ ମିଶିଥିବା କିଛିଟା ମନ୍ତୁରା ବାଲି, ଚଳମାନ ଅବସ୍ଥାରେ ଥିବା କୌଣସି ସାଇକେଲର ପଛ ଚକ ଉପରକୁ ଫିଙ୍ଗିଦେଲେ ତାହା ଢ଼ୋ କିନା ଫାଟିଯିବ । ରବି ଏକାଧିକ ବାର ଏ ମାଡୁଆ ମ୍ୟାଜିକ୍ ଯୋଗୁଁ ଉତ୍ତମ ମଧମ ଖାଇ ସାରିଥିବାର ଭୟ ଦେଖାଇ ଉପରୋକ୍ତ ଯାଦୁଖେଳଟିକୁ ମୋ ମାମୁଁଘର ଗାଁରେ ଚେଷ୍ଟା ନକରି ଆମ ଗାଁରେ ଦେଖାଇବାକୁ ଅନୁରୋଧ କରନ୍ତେ ମୁଁ ହ୍ରିଂ, ଶ୍ରୀଂ ଜାତୀୟ ମନ୍ତ୍ର ରଚିତ କାଗଜଟିକୁ ଚାରି ଚଉତ କରି ଖୁବ୍ ହେପାଜତ୍‌ରେ ଆମ ଗାଁ ଯାଏଁ ନେଇ ଆସିଲି ଏବଂ ପହଞ୍ଚିବାର ପରଦିନ ସକାଳୁ ମୁଁ ଆବଶ୍ୟକ ସରଞ୍ଜାମ ଓ କଣ୍ଠସ୍ଥ ମନ୍ତ୍ରସହ ଆମ ଗାଁ ମୁଣ୍ଡେ ହାଜର ହୋଇଗଲି । ମୋ ଦୁର୍ଭାଗ୍ୟକୁ ମୋ ଦୃଷ୍ଟିକୁ ଆସିଥିବା ପ୍ରଥମ ସାଇକେଲ ଆରୋହୀଟି ଥିଲେ ମୋର ପୂଜ୍ୟ ଭଣ୍ଡାରୀ ଗୁରୁଜୀ ଗୋପୀ ସାଆରେ, ଯିଏକି ପାଠ ଭୁଲ୍ ହେଲେ ନାହି ମୁଣ୍ଡ ଆଙ୍ଗୁଠିରେ ରଗଡି ଦରଜ କରିଦେଉଥିଲେ । ତାଙ୍କ ସାଇକେଲ୍ ଚକା ଫଟାଇବା ଭଳି ମାରାତ୍ମକ କାର୍ଯ୍ୟରୁ କ୍ଷାନ୍ତ ହୋଇ ମୁଁ ଅପେକ୍ଷା କଲି ପରବର୍ତ୍ତୀ ସାଇକେଲ ଆରୋହୀଙ୍କୁ । ସେ ମାତ୍ର ଦଶ ମିନିଟ୍ ପରେ ମୋ ନଜରକୁ ଆସନ୍ତେ ମୁଁ କଣ୍ଠସ୍ଥ କରିଥିବା ମନ୍ତ୍ରଟିକୁ ନିର୍ଦ୍ଧାରିତବାର ଉଚ୍ଚାରଣ କରି ବାଲିକୁ ମନ୍ତୁରାଇ ନେଲି ଏବଂ ସାଇକେଲ ମୋ ଅବ୍ୟର୍ଥ ଲକ୍ଷର ସୀମା ଭିତରକୁ ଆସନ୍ତେ ମୁଁ ସେଥିରୁ ମୁଠାଏ ତାଙ୍କ ଚକା ଉପରକୁ ପୋପାଡିଲି । ଷାଠିଏ ବୟସାଧିକ ନିରୀହ ବୃଦ୍ଧ ସାଇକେଲ ଆରୋହୀ ମୋ ଚପଳାମିକୁ ସ୍ମିତ ହସି ବରଦାସ୍ତ କଲେ ଏବଂ ଦ୍ୱିତୀୟ ମୁଠାଏ ମନ୍ତୁରା ବାଲିର କିୟଦ୍ ଅଂଶ ତାଙ୍କ ଦେହରେ ବାଜିଲାରୁ ସେ ଦ୍ରୁତ ଗତିରେ ପେଡାଲ ମାରିଲେ । ଚକା ତଥାପି ଫାଟି ନଥିଲା । ସାଇକେଲ କ୍ରମଶଃ ଦୂରେଇ ଯାଉଥିଲା । ମାତ୍ର ମୁଁ ନଛୋଡ଼ ବନ୍ଧା ଯାଦୁକର ଅସଫଳ ନହେବାର ଜିଦ୍‌ରେ ତା ପଛେ ପଛେ ଧାଇଁ ପ୍ରାୟ ଅଧ ମାଇଲିଏ ଯାଏଁ ବଡ଼ ପାଟିରେ ହ୍ରିଂ, ଶ୍ରୀଂ 'ମନ୍ତ୍ର ଉଚ୍ଚାରଣ କରି ପଛ ଚକା ଉପରେ ବାଲି ମାଡ଼ କରି ଚାଲିଥାଏ । ମାତ୍ର, ଚକା ଫାଟିବା'ତ ଦୂରର କଥା, ଗେଟିସ୍ ଟିକିଏ ବି ମୋ ନଜରକୁ ଆସିନଥିଲା । ମୁଁ ଝାଳ ଜୁଡୁବୁଡୁ ହୋଇ ପାନ ମସଲା ଡବାରେ ରଖିଥିବା ମନ୍ତୁରା ବାଲି ମୁଠାକ ଧରି ଗୋଟେ ରାସ୍ତା କଡିଆ ଗଛ ମୂଳେ ବସି ପଡିଲି । ସେତେବେଳକୁ ଜାଣିଲି ରବି ମତେ ଠକି ଦେଇଛି । ଖାଲି ସେତିକି ନୁହେଁ, ଏକୋଇଶି ଥର ଆମ୍ବ ଟାକୁଆକୁ ସିଜୁ କ୍ଷୀରରେ ବୁଡାଇ ଶୁଖାଇବାର ଅପଚେଷ୍ଟା କେବଳ ମୁଁ ନୁହେଁ ଆପଣ ମାନଙ୍କ ମଧରୁ କେତେଜଣ ମଧ କରିଥିବେ, କାଳେ ପାଞ୍ଚମିନିଟ୍ ଭିତରେ ସେଥିରୁ ଗଛ ଉଠି ଆମ୍ବ ଫଳିଯିବ । ଘରସାରା ଝିଟିପିଟି ଦେଖିବା ପାଇଁ ପିଲାଦିନେ ଝିଟିପିଟି ମାରିବାକୁ ଚେଷ୍ଟାକରି କେତେ ଛାଞ୍ଚୁଣୀ ମୁଁ ନଷ୍ଟ କରି ବୋଉ ଠାରୁ ଗାଳି ଶୁଣିଛି, ମାତ୍ର ତା ଲାଙ୍ଗୁଡ ବ୍ୟତୀତ ଝିଟିପିଟି ଲାସ୍ ଟିଏ ମତେ ମିଳିନଥିଲା ଯାହାର ମୁଖ ଗହ୍ୱରରେ କପା ମଞ୍ଜି ଭର୍ତ୍ତିକରି ମାଟିରେ ପୋତିଥିଲେ କପାଗଛ ସୃଷ୍ଟି

ହୋଇ କପା ଫଳିଥାଆନ୍ତା । ଏବଂ ତାଥାରି ତୂଳାରେ ବଳିତା ବୋଳି ଦୀପ ଜାଳିଥିଲେ ଘର ସାରା ଝିଟିପିଟି ମଧ୍ୟ ଦେଖିଥାଆନ୍ତି । ସେମିତି ଗୁଣ୍ଡିଚି ମୂଷା ବାଳ ନେଇ ପ୍ରେମିକା ବଶ କରିବା ମନ୍ତ୍ର ଯଦି ଆପଣଙ୍କୁ ଏ ଯାଏଁ ଜଣାନାହିଁ, ତାହେଲେ ମୁଁ କହିବି ଆପଣ ଭାଗ୍ୟବାନ ।

ଏସବୁ ଘଟୁଥିଲା ଏଇଥିପାଇଁ ଯେ ଆମେ ସଠିକ୍ ରାସ୍ତା ପାଉନଥିଲେ ଯାଦୁକର ଟିଏ ବନିବା ପାଇଁ । ଯାଦୁକର ବନିବାର ଭୂତ ଆପଣଙ୍କ ମୁଣ୍ଡରେ ସବାର ହେଲାପରେ ଆପଣ ଜୀବନର ବହୁ ମୂଲ୍ୟବାନ ଅଂଶ କଟାଇଦେଲେ କେବଳ ଯାଦୁ ଦୁନିଆର ଅସଲି ପ୍ରବେଶ ଦ୍ୱାର ଖୋଜିବାରେ । କେହି ଆପଣଙ୍କୁ କହିଲେନି ସେତେବେଳେ କଲର ଚେଂଜି ଫିଦର କେଉଁଠି ମିଳିବ, ଜିଗ୍ ଜାଗ୍ ଲେଡିର କାଠ ଖୋଲଟିର ନିର୍ମାଣ କୌଶଳ କ'ଣ, ଇନ୍‌ଭିଜିବଲ ଥ୍ରେଡ କଲିକତାର କେଉଁଠି ମିଳେ ? ବହୁ ଅମୀମାଂସିତ ପ୍ରଶ୍ନର ଉତ୍ତର ନମିଳିଲା ପରେ ଆପଣଙ୍କ ଯାଦୁ ଶିଖିବାର ପରିପକ୍ୱତା ଅକାଳରେ ଆସିଗଲା । ଫଳରେ ଆପଣ ଏକ ଅଧା ଶିଖା ଯାଦୁକର ହୋଇ ରହିଗଲେ ଏବଂ ସେଇ କେତୋଟି ତାସ୍ ମ୍ୟାଜିକ୍ ବା କଟା ଦଉଡିକୁ ଯୋଡେଇ କରିବାର ଯାଦୁ ବ୍ୟତୀତ ଆଉ ଆଗକୁ ବଢ଼ିପାରିଲେ ନାହିଁ । ଏଇଥିପାଇଁ ସେମିନାର ଟିଏ ନିହାତି ଜରୁରୀ । ଏଇଠି ଆପଣ ମିଶିପାରିବେ ଏସବୁ ଜାଣିଥିବା ଯାଦୁକର ବନ୍ଧୁଟି ସହିତ । ସେମିନାରରେ ଯୋଗଦେବା ହୁଏତ ସାମାନ୍ୟ ଖର୍ଚ୍ଚ ବହୁଳ ହୋଇପାରେ ଯଦି ଏହା ଆପଣଙ୍କ ସହର ବା ଗାଁ ନିକଟରେ ହେଉ ନଥାଏ । ଆପଣ ଉଦ୍ୟମ କଲେ ଆପଣଙ୍କ ଅଞ୍ଚଳରେ ଥିବା ଯାଦୁପ୍ରେମୀ ମାନଙ୍କୁ ନେଇ ସପ୍ତାହକେ ଥରେ ବା ପ୍ରତି ପନ୍ଦର ଦିନରେ ଥରେ ଏକାଠି ହୋଇପାରିବେ । ସମସ୍ତଙ୍କ ମିଳିତ ସହଯୋଗରେ ଯାଦୁ ପୁସ୍ତକ ସମ୍ବଳିତ ପାଠାଗାରଟିଏ ସ୍ଥାପନ କରିପାରିବେ ଓ କିଛି ମାସିକ ଯାଦୁ ପତ୍ରିକାର ନିୟମିତ ଗ୍ରାହକ ବନି ପାରିବେ । ପତ୍ର ପତ୍ରିକାରୁ ଆପଣ ଯାଦୁ ଦୁନିଆରେ ଘଟୁଥିବା ଖବର ସମ୍ପର୍କରେ ଅବଗତ ହୋଇ ପାରିବେ । ସେଥିରେ ପ୍ରକାଶିତ ପୁସ୍ତକ ସମୀକ୍ଷାରୁ ଜାଣିବେ କେଉଁ ମ୍ୟାଜିକ୍ ବହିଟି ଆପଣଙ୍କ ପାଇଁ ନିହାତି ଜରୁରୀ । ଏଥି ସହିତ ଆପଣଙ୍କ ଅଭ୍ୟାସ ଅବ୍ୟାହତ ରହୁ । ସେଇ ପୁରୁଣା ମ୍ୟାଜିକ୍‌କୁ ଦୋହରାନ୍ତୁ । ଦେଖିବେ କେଇ ମାସ ଭିତରେ ଆପଣ ଆଗ ଅପେକ୍ଷା ଢ଼େର ଭଲ ଦେଖାଇ ପାରୁଛନ୍ତି ।

ଶେଷ କଥାରେ ଏତିକି କହିବି, କୌଣସି ମ୍ୟାଜିକ୍ ବଡ ବା କୌଣସି ମ୍ୟାଜିକ୍ ସାନ ଏମିତି କିଛି ନାହିଁ । ଆପଣଙ୍କ ଉପସ୍ଥାପନା ହିଁ ଏହାକୁ ବଡ ଛୋଟ କରିଦିଏ । ଭାରତର ଜଣାଶୁଣା ଲୋକପ୍ରିୟ ଯାଦୁକର ଜୁନିୟର ପି.ସି.ସରକାର ତିରିଶ୍ ଟଙ୍କାରେ ବିକ୍ରି ହେଉଥିବା "ସିଲ୍କ କାର୍ଡ ରିପିଟ୍" ଯାଦୁଖେଳ ଦେଖାଇ ଲୋକଙ୍କ ଦୃଷ୍ଟିରେ ଛୋଟ ହୋଇ ଯାଇ ନାହାଁନ୍ତି । ମାତ୍ର ଆପଣ ପାଞ୍ଚ ଶହ ଟଙ୍କା ଦେଇ କିଣିଥିବା " ସୋର୍ଡ ଥ୍ରୁ ନେକ୍" ଯାଦୁ ଦେଖାଇ ହୁଏତ ଲୋକଙ୍କ ଦୃଷ୍ଟିରେ ସଫଳ ଯାଦୁକର ହୋଇ ନଥିବେ ।

ଯାଦୁ ସମ୍ପର୍କରେ ଉପଦେଶ ଦେଲାଭଳି ବୟସ ଏବଂ ଅଭିଜ୍ଞତା ହୁଏତ ମୋର ଯଥେଷ୍ଟ ନୁହେଁ । ମୋ ଅନୁଭୂତିରୁ ଦି ଧାଡି ଯଦି ଆପଣଙ୍କ କାମରେ ଲାଗିଲା, ତେବେ ମୁଁ ନିଜକୁ ଧନ୍ୟ ମନେ କରିବି ।

ଆସନ୍ତା ସମ୍ମେଳନରେ ଆପଣଙ୍କୁ ଜଣେ ସଫଳ ଯାଦୁକର ଭାବେ ଦେଖିବି ନିଶ୍ଚୟ ।

ଗ୍ରାମ / ପୋ: ନରଣଗଡ, ଜିଲ୍ଲା - ଖୋର୍ଦ୍ଧା, ପିନ - ୭୫୨୦୧୮, ଫୋନ - ୦୬୭୫୫ - ୪୫୦୨୩



* " If I give you a Dollar and you give me a Dollar, we each still have a Dollar; but let me give you an idea and you give me and idea - then we each have Two ideas. That is why there is such a great brotherhood among magicians."
-Dr. Harlan Tarbell

*(The late Dr. Tarbell is the author of the world famous Magic Course viz: the ' Tarbell Course' - in 8 volumes. The present cost of the set is around Rs. 9000/-.)*

# THE PLEDGE

" I PLEDGE TO UPHOLD THE DIGNITY OF MAGIC, TO SHOW RESPECT TO THE FELLOW MAGICIAN, TO PROTECT THE SECRETS AND NEVER USE MY MAGICAL KNOWLEDGE TO CAUSE HARM TO ANYONE".

ଯାଦୁକରକୁ କଠୋର ନିୟମ ପାଳନ କରିବାକୁ ହୁଏ । ଆମେ ଉପରୋକ୍ତ ମର୍ମରେ ଶପଥ ନେଇ ନିଷ୍ଠାର ସହ ପାଳନ କରୁ । ଆସନ୍ତୁ, ନିଷ୍ଠାର ସହ ମ୍ୟାଜିକ୍ ଶିଖିବା --------------

ଉଚ୍ଚତର ସୋପାନରେ ପହଞ୍ଚିଥିବା ଯାଦୁକର ମାନେ J.B. Bobo ଙ୍କ ନାମ ସହିତ ପରିଚିତ ତାଙ୍କ ପ୍ରଣୀତ ପୁସ୍ତକ Modrn coin Magic ବିଶ୍ୱ ପ୍ରସିଦ୍ଧ । ଏବେ ପୁସ୍ତକଟିର ଭାରତୀୟ ସଂସ୍କରଣ ପ୍ରକାଶ ପାଇଛି । ସେ ୧୩ ବର୍ଷର ଥିବାବେଳେ ଉପର ବର୍ଣ୍ଣିତ ଦିଆସିଲି କାଠି ଖେଳଟି ଗୋଟିଏ ଯାଦୁସାମଗ୍ରୀ ଦୋକାନରୁ କିଣିଥିଲେ । ସେଇ ଘଟଣାରୁ ତାଙ୍କ ଯାଦୁକର ଜୀବନର ସୂତ୍ରପାତ ହୋଇଥିଲା । ସମ୍ପାଦକ

# ଦିଆସିଲି କାଠି ଓ ରୁମାଲ

ସି.ଏଚ୍, ପର୍ଶୁରାମ, ବଲାଙ୍ଗୀର




ଯାଦୁ ମାନେ କଣ? ଯାଦୁ ନାଁଆ ଶୁଣିଲେ ଅନେକେ ଡରନ୍ତି । ସେଭଳି ପ୍ରଦର୍ଶନୀ ଯାଦୁ ଖେଳରେ କିଛି ନାହିଁ । ଏହାର ଲୋକପ୍ରିୟତା ହେତୁ ପ୍ରଦର୍ଶନ ମଞ୍ଚ ବାହାରେ ମଧ ବେଳେ ବେଳେ କିଛି ଖେଳ ଦେଖାଇବାକୁ ଲୋକେ କହିଥାନ୍ତି । ତେଣୁ ଯାଦୁଗର ପକେଟରେ ଛୋଟିଆ ମୋଟିଆ ଖେଳ ଗୋଟିଏ ଦୁଇଟି ପ୍ରସ୍ତୁତ ହୋଇ ରହିଥିବା କଥା । ମୋର ଅଭିଜ୍ଞତାରୁ କହୁଛି - ଜିଲ୍ଲାପାଳ ଆଇ.ଜେ.ଏସ୍. ଖୁରାନାଙ୍କର ବ୍ୟବସ୍ଥାକ୍ରମେ ମୁଁ କୋରାପୁଟ ଜିଲ୍ଲାରେ ରେଡକ୍ରସ ପାଣି ନିମନ୍ତେ ମ୍ୟାଜିକ୍ ସୋ ପାଇଁ ବିଭିନ୍ନ ସ୍ଥାନ ବୁଲିବା ଭିତରେ ଥରେ ଦଳେ ଲୋକେ ମୋତେ ଯାଦୁ ଦେଖାଇବାକୁ କହିଲେ । ମୁଁ, ହଁ ହାଁ କହି ପ୍ରସ୍ତୁତ ହୋଇଗଲି । ପକେଟରୁ ରୁମାଲ କାଢ଼ି ମଝିରେ ଦିଆସିଲି କାଠିଟିଏ ରଖିବାକୁ କହିଲି । ଜଣେ ରଖିଲେ । ମୁଁ ରୁମାଲଟି ଚଉଡି କାଠିଟି ଭାଙ୍ଗିବାକୁ କହି ଦେଖେଇଲି । ସେମାନେ ଭାଙ୍ଗିଲେ । ସନ୍ତୁଷ୍ଟ ହେଲେ ଯେ ରୁମାଲ ଗୁଡା ହୋଇଥିବା ଅବସ୍ଥାରେ କାଠିଟି ତିନି ଖଣ୍ଡରେ ଭାଙ୍ଗିଗଲା । ହେଲେ ରୁମାଲଟି ଖୋଲି ଦେଖେଇଲା ବେଳକୁ କାଠିଟି ଠିକ୍ ସେହିଭଳି ଅଛି । ସେମାନେ ଆଶ୍ଚର୍ଯ୍ୟ ହେଲେ । ଭଙ୍ଗାକାଠି କେମିତି ମୁହୂର୍ତ୍ତକ ମଧ୍ୟରେ ଯୋଡି ହୋଇଗଲା ?

**ପ୍ରଣାଳୀ** - ରୁମାଲଟିଏ ଦରକାର । ତାର ଧଡି ଚଉଡା କରି ଏମିତି ସିଲାଇ ହୋଇଥିବ ଯେମିତି ଧଡି ଭିତରେ ଦିଆସିଲି କାଠି ଲୁଚେଇ ରଖି ହେବ । (ଚିତ୍ର ନଂ ୧) । ଦର୍ଶକ ରୁମାଲ ମଝିରେ ଦିଆସିଲି କାଠି ରଖିବେ ( ଚିତ୍ରନଂ-୩) ରୁମାଲ ଚଉଡି ଏଭଳି ଦେଖେଇବେ ଯେମିତି ଧଡି ଭିତର କାଠି ଆଗକୁ ରହିବ । ତାକୁ ଭାଙ୍ଗି ଦର୍ଶକ ଭାବିବେ ଯେ କାଠିଟି ଭାଙ୍ଗିଗଲା । ହେଲେ ଖୋଲି ଦେଖିଲା ବେଳକୁ କାଠିଟି ଅକ୍ଷୁର୍ଣ୍ଣ ଅବସ୍ଥାରେ ଅଛି ।



---

ଉଚ୍ଚତର ସୋପାନରେ ପହଞ୍ଚିଥିବା ଯାଦୁକର ମାନେ J.B.Bobo ଙ୍କ ନାମ ସହିତ ପରିଚିତ । ତାଙ୍କ ପ୍ରଣୀତ ପୁସ୍ତକ Modern Coin Magic ବିଶ୍ୱ ପ୍ରସିଦ୍ଧ । ଏବେ ପୁସ୍ତକଟିର ଭାରତୀୟ ସଂସ୍କରଣ ପ୍ରକାଶ ପାଇଛି ।

ସେ ୧୩ ବର୍ଷର ଥିବା ବେଳେ ଉପର ବର୍ଣ୍ଣିତ ଦିଆସିଲି କାଠି ଖେଳଟି ଗୋଟିଏ ଯାଦୁସାମଗ୍ରୀ ଦୋକନରୁ କିଣିଥିଲେ । ସେଇ ଘଟଣାରୁ ତାଙ୍କ ଯାଦୁକର ଜୀବନର ସୂତ୍ରପାତ ହୋଇଥିଲା । - ସଂପାଦକ

## ମଣିଷ

"ପ୍ରଶୟ ଦେଲେ, ମୁଣ୍ଡରେ ଚଢ଼େ
ସମାଦର କଲେ, ଖୋସାମଦ ଭାବେ
ସମୁପଦେଶ ଦେଲେ, ମୁହଁ ମୋଡ଼େ
ଉପକାର କଲେ, ଅସ୍ୱୀକାର କରେ
ବିଶ୍ୱାସ କଲେ, କ୍ଷତି କରେ
ସୁଖ କଥାରେ , ହିଂସା କରେ
ଦୁଃଖ କଥାରେ, ସୁଯୋଗ ଖୋଜେ
ଭଲ ପାଇଲେ, ଆଘାତ କରେ
ସ୍ୱାର୍ଥ ପୂରଣ ହେଲେ, ଦୂରେଇ ଯାଏ ।"

ଏଇଟା କ'ଣ ମଣିଷର ଚରିତ୍ର ହେବା ଉଚିତ୍ ?

ଲେଖକ- ଅଜ୍ଞାତ

# ସାଦାକାଗଜରେ ରିଙ୍ଗ କଟିଂ

*ସି.ଏଚ୍.ପର୍ଶୁରାମ, ବଲାଙ୍ଗୀର*

ଯାଦୁଖେଳ ଦେଖିବା ପାଇଁ ଶିକ୍ଷିତ ଅଶିକ୍ଷିତ ସବୁଲୋକଙ୍କର ଆଗ୍ରହ ଏବଂ ଜଣେ ଯାଦୁକର ବୋଲି ଜାଣିଲେ ଅନେକ ଠାରେ କୌଣସି ଛୋଟକୋଟର ଖେଳଟିଏ ହେଲେ ଦେଖାଇବାକୁ ଲୋକେ କହିଥାନ୍ତି । ମୁଁ ଦିନେ ବଲାଙ୍ଗୀରରେ ଥିବା ମୋର ବନ୍ଧୁ ସିଭିଲ୍ ସପ୍ଲାଇ ଆକଉଣ୍ଟେଣ୍ଟ ଶ୍ରୀ କାମେଶ୍ୱର ରାଓଙ୍କ ଘରକୁ ଯାଇଥିଲି । ମୋ ସାଙ୍ଗରେ ମୋର ଚିତ୍ରକର ବନ୍ଧୁ ଶ୍ରୀ ଶ୍ରୀକାନ୍ତ ଉଦ୍‌ଗାତା ମଧ ଯାଇଥିଲେ । ତାଙ୍କ ଘରେ ପହଞ୍ଚିବା ପରେ କିଛି ସମୟ କଥାବାର୍ତ୍ତା ଭିତରେ ସେ ମୋତେ ମେଜିକ୍‌ଟିଏ ଦେଖାଇବାକୁ କହିଲେ । ମୁଁ ଆଦୌ ପ୍ରସ୍ତୁତ ନଥିଲି । ହଠାଦ୍ ତାଙ୍କର ଟେବୁଲ୍ ଉପରେ ଦେଖିଲି ଗୋଟେ ଗମ୍ ଟ୍ୟୁବ୍ । ପାଖରେ ଖବର କାଗଜ । ମୋର ହଠାତ କୌଶଳଟିଏ ମନେପଡିଲା । ମୁଁ ସେଇ ଖବର କାଗଜରୁ ପ୍ରାୟ ୧୦ ସି.ଏମ୍ ଚଉଡାର ରିବନ ଭଳି ଲମ୍ୱା ୨ ଖଣ୍ଡ କାଗଜ କାଟି ନେଲି । ସେଇ ଦୁଇ ଖଣ୍ଡ କାଗଜର ପାଖରେ । ଅଗ୍ରଭାଗ ଅଠାରେ ଲଗେଇ ଦେଲେ ଆପେ ଦୁଇଟି କାଗଜ ରିଙ୍ଗ୍ ତିଆରି ହୋଇଗଲା । ଶ୍ରୀ ରାଓଙ୍କୁ ସେଥିରୁ ଗୋଟେ ଦେଇ କଇଁଚିରେ ରିଙ୍ଗ୍ ମଝିରୁ ଅଧାରୁ କାଟିବାକୁ କହିଲି ।

ସେ କାଟିଲେ । ଚଉଡା ୧୦ ସିଏମର ରିଙ୍ଗଟି ଦୁଇଟି ୫ ସିଏମ୍ ରିଙ୍ଗରେ ପରିଣତ ହୋଇଗଲା । ଯାହା ସ୍ୱାଭାବିକ । ମାତ୍ର ମୁଁ ଯେତେବେଳେ ମୋ ହାତର ରିଙ୍ଗକୁ ସେଇ ପାଞ୍ଚ ସିଏମ୍ ଚଉଡାରେ ମଝିରୁ କାଟି ସାରି ଦେଖେଇଲି ସେତେବେଳେ ସେମାନେ ଦେଖିଲେ ଦୁଇଟି ରିଙ୍ଗ୍ ହେବା ବଦଳରେ ମୋ ହାତର ରିଙ୍ଗଟି ପାଞ୍ଚ ସି.ଏମ୍ ଚଉଡା ଅଥଚ ଦୁଇଗୁଣ ଲମ୍ୱା ବଡ ରିଙ୍ଗଟିଏ ହୋଇଛି । ଶ୍ରୀ ରାଓ, ତାଙ୍କର ପରିବାର ବର୍ଗ ଏବଂ ଶ୍ରୀକାନ୍ତ ବାବୁ ଆଶ୍ଚର୍ଯ୍ୟ ହୋଇଗଲେ । ମାତ୍ର ହେଲେ ଏହା ଆଗରୁ କରିରଖାଯାଇଥିବା କଥା । ଆଉ ରିଙ୍ଗ୍‌ଟି ଯେତେ ଲମ୍ୱା ହେବ ଦର୍ଶକ ଆଖିରେ ଆପଣଙ୍କର ଚାଲାକୀ ସେତେ ଗୋପନ ରହିବ । ସେଥିପ୍ରତି ଦୃଷ୍ଟି ଦେବେ ।.

**ପ୍ରଣାଳୀ**

ଖବର କାଗଜର ୧୦ ସିଏମ୍ ଚଉଡାର ଦୁଇଖଣ୍ଡ ଲମ୍ୱା କାଗଜ ବାହାର କରି ଗୋଟିଏର ଅଗ ଯୋଡିଦେଲି । ଯାହା ରାଓଙ୍କୁ କାଟିବାକୁ ଦେଇଥିଲି । ମାତ୍ର ମୁଁ କାଟିଥିବା କାଗଜକୁ ସିଧା ନଯୋଡି ଗୋଟିଏ ପଟ ଓଲଟାଇ ଦେଇଥିଲି । ୧୦ ସିଏମ୍ ଚଉଡା କାଗଜ ଚଉଡାରେ ୫ ସିଏମ୍ ମଝିରୁ କଟାଗଲେ ୫ ସେମି ଚଉଡାର ଦୁଇଟି ରିଙ୍ଗ ହେବା ସ୍ୱାଭାବିକ । ମାତ୍ର ମୁଁ ସେମାନଙ୍କର ଅଜାଣତରେ ମୋ ରିଙ୍ଗଟି ମୋଡି ଦେଇଥିବାରୁ ତାହା ୨ଟି ନହୋଇ ଗୋଟିଏ ହେଲା ଓ ଲମ୍ୱା ହେଲା ଦୁଇଗୁଣ ।

# ନ ଛୁଇଁ ନଡ଼ିଆ ଫଟାଇବା

ସି.ଏଚ୍.ପର୍ଶୁରାମ, ବଲାଙ୍ଗୀର

ମୁଁ ମୋର ଦଳ ସହିତ ଯାଦୁଖେଳ ପ୍ରଦର୍ଶନ ପାଇଁ ଆନ୍ଧ୍ରପ୍ରଦେଶ ଯାଇଥିଲି । ସେଠା ରହଣୀ କାଳରେ କିଛି ଦିନ ଖେଳ ଦେଖାଇଥିଲି ସାଲୁରରେ । ଖେଳ ପ୍ରଦର୍ଶନର ଆୟୋଜନ ପୂର୍ବରୁ ମୁଁ ଅନୁମତି ନିମନ୍ତେ ମ୍ୟୁନିସିପାଲିଟି କମିଶନରଙ୍କୁ ଭେଟିଥିଲି । କଥା ପ୍ରସଙ୍ଗରେ ସେ ମୋତେ ପଚାରିଲେ "କ'ଣ ଯାଦୁ ଦେଖେଇ ପାରିବ" ? ମୁଁ କହିଲି - "ମୁଁ ନଡ଼ିଆ ଫଟେଇ ପାରିବି" । ସେ କହିଲେ "ମୁଁ କଣ ପାରିବି ନାହିଁ" ? ମୁଁ ଉତ୍ତର ଦେଲି, " ଆପଣ ବି ପାରିବେ , ମାତ୍ର ହାତରେ ଧରି ବାଡେଇ ଫଟାଇବେ । ମାତ୍ର ମୁଁ ମନ୍ତ୍ରକରି ଫଟେଇବି" । କଥାଟି ଭାରି କୌତୁକିଆ ହେଲା । ସେ ଅନୁମତି ଦେଲେ । ଏବଂ ମୁଁ ମନ୍ତ୍ରକରି ନଡ଼ିଆକୁ ନ ଛୁଇଁ ଫଟେଇ ଦେଲି । ସେଠାରେ ଉପସ୍ଥିତ ଥିବା କମିଶନର ଏବଂ ଅନ୍ୟ ଦର୍ଶକମାନେ ମୋର ଏଇ ସାମାନ୍ୟ ମେଜିକ୍ ଦେଖି ମୋର ଭୂରି ଭୂରି ପ୍ରଶଂସା କଲେ । ତେବେ କଥା ହେଉଛି, ଏହା କିଭଳି ହେଉଛି ?

## କୌଶଳ

ଟଟକା ଶିପଚୂନରେ ପାଣି ପକାଇଲେ ତାହା ଟକ୍ ଟକ୍ ଫୁଟିବ । । ସେତିକିବେଳେ ସେଇ ପାଣିରେ କତାଛଡା ହୋଇଥିବା ନଡ଼ିଆ ପକେଇ ତାକୁ ସାତ ଦିନ ବୁଡେଇ ରଖି ବାହାର କରି ଶୁଖେଇଦେବ । ସାବଧାନ ! ତହିଁରେ ପାଣି ପକେଇବ ନାହିଁ । ତା ଉପରେ ପାଣି ପଡ଼ିଲେ ଫାଟିଯିବ ।

ନଡ଼ିଆ ଦେଖେଇ, ମନ୍ତ୍ର କଲାଭଳି ତା ଉପରେ ପାଣି ପକେଇଲେ ନଡ଼ିଆ ଫାଟିଯିବ । ଦେଖିଲା ଲୋକ କହିବେ ତମେ ମନ୍ତ୍ର କଲ ଆଉ ନଡ଼ିଆ ମନ୍ତ୍ରବଳରେ ଫାଟିଗଲା ଆଉ ସର୍ବେ ଆଶ୍ଚର୍ଯ୍ୟ ହେବେ ।

## MAGIC IS THE ART OF CREATING ILLUSION HERE ARE SOME OPTICAL ILLUSIONS :

ସଂଗ୍ରହ - ବି.କେ.ପାଲ, ଚିତ୍ର - ପ୍ରିୟମ୍ବଦା



HOW MANY CUBES ? '6', TURN up side down & see !

## ଭାସନ୍ତା ଆଙ୍ଗୁଳି



ଚିତ୍ରରେ ଦେଖାଇ ଦିଆଯାଇଥିବା ଭଳି ୨ ହାତର ୨ ବିଶି ଆଙ୍ଗୁଠିକୁ ଧରନ୍ତୁ ଯେପରି ଆଙ୍ଗୁଠି ୨ଟି ମୁହଁ ଠାରୁ ପ୍ରାୟ ୧ ଇଞ୍ଚ ଉପରକୁ ଛାଡିରହେ । ଭାସନ୍ତା ଆଙ୍ଗୁଳି ଦେଖିବାକୁ ମିଳିବ । ହଁ, ୨ ଆଙ୍ଗୁଠି ମଝିରେ ଥିବା ଫାଙ୍କ ଦେଇ ଦୂରକୁ କିଛି ସମୟ ଦେଖିବାକୁ ହେବ । ଆଙ୍ଗୁଠି ଦୁଇଟି ତଳ ଉପର କରି ପରୀକ୍ଷା କରନ୍ତୁ ।

ପ୍ଲେଟ ଉପରେ ଥିବା କେକଟିରୁ ଖଣ୍ଡେ କାଟି ନିଆଯାଇଛି । କାଟିନିଆଯାଇଥିବା ଖଣ୍ଡଟି ଗଲା କୁଆଡେ ? ଯଦି ଦେଖିବାକୁ ଚାହାନ୍ତି, ଚିତ୍ରଟିକୁ ଓଲଟାଇ ଧରି ଦେଖନ୍ତୁତ !



ହାତ ପାପୁଲି ଭିତରେ କଣା ହୋଇଥିବାର ମଜାଦାର ଦୃଶ୍ୟ ଦେଖିବାକୁ ଚାହାନ୍ତି ? ଖଣ୍ଡେ କାଗଜ ମୋଡି ନଳଟିଏ କରାଯାଉ । ରବର ବ୍ୟାଣ୍ଡ ଲଗାଇଦେଲେ ମଜଭୁତ ରହିବ । ଦୁଇଟି ଆଖି ଖୋଲା ରଖି ନଳଟିକୁ ଚିତ୍ରରେ ଦେଖା ହେଲାଭଳି ଗୋଟିଏ ହାତରେ ଧରି ଅନ୍ୟ ପାପୁଲିଟି ( * ଚିହ୍ନିତ) ଆଗପଛ କଲେ ସେଥିରେ କଣା ହୋଇଥିବାର ଦେଖାଯିବ । ମନେରଖନ୍ତୁ, ଦୁଇଆଖି ଖୋଲା ରଖି ଦୂର୍‌ବୀଣ୍‌ରେ ଚାହିଁଲାପରି ଦୂରରେ ଥିବା କାନ୍ଥକୁ ଚାହାଁନ୍ତୁ ।



# ସ୍ମୃତିରୁ ଚେନାଏ.............



Front row (sitting) L to R > T. Pati, Prof. Sukesh. Er. B.C. Mohanty, CH Parasuram & Niranjan Das
Middle row (standing) L to R > Er. Chinmoy Rakshit, Sridhar Das, S.K. Mohanty, Bimal K. Biswal, P.K. Senapati, B. Mohapatra & B.K. Pal.
Back row (standing) L to R > Master Badal, P.K. Mishra, Dilip K. Mishra, Ram Ch. Hansdah, Gopabandhu Bisoi, Ashok K. Mohanty & S.S. Nayak.



ଡାକ୍ତର ରାଜା ସୁକେଶ ପଟ୍ଟନାୟକଙ୍କୁ ଆଶିଷ ମେମୋରିଆଲ ଟ୍ରଫି
ପ୍ରଦାନ ଓ ସମ୍ବର୍ଦ୍ଧନା ଉତ୍ସବ ଅବସରରେ...............

"Co-operation is spelled with two letters - *WE* . GEORGE M VERITY


Surasen Jena
IAS(Retd.)
Patron





Suresh
Balbant Ray
Patron


Abhiram Khuntia
At- Ambapada,
Nuapalamhat,
Cuttack - 758022


Anupam Bose
Dakbangalo
Road, Old Town,
Bhubaneswar


Ashok Ku. Mohanty
BTOHCS Ltd., 2nd
Floor, Co-Housing
Bldg. Janpath,
Bhubaneswar


Dilip Ku. Sahoo
Tileswar,
Krutibaspur,
Athamallik, Angul


G. C. Behera
Kendriya
Vidayalaya,
Paradeep, J.S.Pur


Kunja Bihari
Pradhan
Tileswar, Krutibaspur,
Athamallik, Angul-


Prof. Sukesh
The King of
Cards,Deen, Faculty of
Card Magic IBMA
Narangarh


B. K. Pal
Type-III-273, New
AG. Colony,
Bhubaneswar -12


Master Badal
Type-III-273, New
AG. Colony,
Bhubaneswar - 12


CH. Parsuram
Bolangir-767001


Er. C. Rakshit
Soelpur, Moliganj,
Balasore


Dilip Ku. Mishra
16/4, Behind
Bhubaneswar Hotel,
Bhubaneswar-6


Santosh Ku.
Mohanty
Bolangir-767001


Subhadarshan
Nath
LIG 8/27, C S Pur,
BDA, BBSR-16


Dambaru Dhar
Rout
Byree Jajpur-
754082


Gopabandhu
Bisoi
1102, Laxmisagar,
Bhubaneswar-6


Manas Ranjan
Behera


Niranjan Das
"Sadhana Kutir"
Gamhandia New Colony,
Kesarpur, Cuttack-1


Pradipta Ku. Mishra
Type-III-2, A.G.
Colony, Unit-4,
Bhubaneswar-1


Sridhar Das
Asurali, Bhadrak


B.C. Parida
Pankpal,
Rahama, J S.Pur


Er. Subhasis Das
JB-45, Jagannath
Colony, Balanda,
Angul


Saty Su. Nayak
H-219, A G
Colony, Unit-4,
BBSR-1


Sahed Ramachandra
Tudu
DE-117, Baramunda
HB-Colony, BBSR-3


Bishnu Ch. Pradhan
At-Talmaliha,
Ambasarmunda,
Athamallik, Angul


Rama Chandra Sahoo
Samanta Sahi,
Daspalla, Nayagarh

*Due to reasons beyond our control, some more photographs of our esteemed members could not be included*

## EDITORIAL: : : ✍

Dear reader,

You may be wondering to see the editorial at this unusual location. We at times go off the beaten track. Since the entire work is a reflection of our dream, I do not venture to speak more.

If we have been able to cause a ripple in the ocean by our humble endeavour to spread the glory of magic; to uphold its dignity; to make the fascinating Art popular among the masses; our life is well lived.

Magic is every where, every time if we are prepared to visualise. Life is MAGIC itself. Yes ! Here and exactly at this point of time, YOU & ME are in communion. I visualise - You are holding an open book and your eyes are open. I further dive deep into your mind and fathom your mood - Yes ! You are getting curious.

Thanks for being with us so far.
We apologize for any lapse in our rendition

- B.K.Pal.

---

## STOP PRESS !

*Message received from*

**SHANKAR'S WORLD OF MAGIC, UDUPI**

"... *We wish the function a grand success.*
*We are always with you*"

Prof. Shankar
(By Email)

---

"To be successful, Magicians must be apt students. Keep up with the times, read all know all, go the other fellow one better, stop nowhere, aim high and you will win." - Joseph Dunninger.

# "Magic Today will be Science tomorrow"

(Excerpts from a live chat with Magician P.C.Sorcar (Jr.)



**Q:** *Do you really belive in real supernatural powers ?*

**A:** How I wish I had supernatural powers, but anything supernatural is basically science of tomorrow. They say, magic today will be science tomorrow.

**Q:** *Which has been the most difficult trick for you to perform so far ?*

**A:** Any trick in front of children. They are so broad eyed and their attention can't be directed to a point which is easily accessible to elderly and educated people. The easiest person to deceive is may be his Excellency the President of India.

**Q :** *Is the effect that you have on the audience mass hypnotism ?*

**A:** No, the word hypnotism comes from a Greek word Hypnos which means sleeping. If my audience sleep who will watch the magic then ? I create hypnotic effects, I misdirect the attention of people but never hypnotise. I claim hypnotism should be restricted to medical science only, not for the cause of entertainment on stage. Though I stood first in Hypnotism as my subject, unfortunately I couldn't use it practically in my life.

**Q:** *When and how did you come up with the idea of making the Taj vanish ?*

**A:** My wife gave me the idea of vanishing Victoria memorial hall. I liked the idea and worked on it. Then I heard that my friend David Copperfield made the Statue of Liberty disappear. One day I made the Victoria Memorial hall disappear, to commemorate the 300th Birth anniversary of Calcutta. But somehow it didn't draw attention of the masses, I started thinking again and finally got the answer. If I were to make one of the seven wonders of the world disappear it would be wonderful and would draw the attention of the people. This finally led me make the Taj vanish and my daughter Maneka made it reappear.

**Q:** Have you failed in any of your tricks during a show ?

**A:** Yes, many times, I am always worried and each and every show is a big challenge for me. In the world of stage magic it is not the trick that matters, but how you present it. If there is any mechanical failure, I change my presentation and don't let people know that something went worng. In the history of magic we have lot of instances where magicians have failed and how they managed that failure.

**Q:** *Can you make me disappear from where you are?*

**A:** Yes. I won't have to do it. You will disappear all by yourself. But that part of magic we don't appreciate, we don't want you to disappear. We want to appear and let people know our existence. You have magic in you, magic of being excellent in your field of expertise. Bring that magic out and show the external world what a wonderful magician you are.

**(Courtesy:- The Times of India, Dt.- 06.12.2001)**

**INDRAJAAL BIKASH MAGIC ACADEMY** is an association of like minded Magicians and magic lovers with the aim of ensuring allround development to the **Art of Magic** by all dignified means. Upholding the universal code of ethics; research and development; strengthening the fraternity of magicians; imparting training to budding aspirants, are some of the cherished goals. This is an absolutely Cultural and non-profit Organisation.

---



# MAGIC

## *A Fascinating Hobby*



- MAGIC is derived from the word " Magus" meaning wise man. In ancient times, the magicians had great influence over the society.
- The history of the great art of magic is related to the history of mankind.
- The modern magician is an actor playing the role of a magician for entertaining his audience.
- Robet Houdin is regarded as the father of modern magic. His pioneering efforts projected the modern magician as a society entertainer.
- In India, the Great P.C. Sorcar (Sr)'s efforts made it popular.
- Magic has been a universal from of entertainment throughout the ages. This may be the world's greatest mind developing pastime, because it sharpens the wit, challenges the mind and stimulates the imagination. It is wonderful training for the mind.
- Cultivating Magic as a hobby helps to develop scientific temper. It is useful for eradication of superstitions from the society.
- Enter into the enchanting world of magic and experience the thrill of being a Magician : a "showman".
- Learn Magic, Entertain your audience. Enhance your personal magnetism. Gain command over the stage; develop oratory; WIN FRIENDS. Some of the greatest performers were shy as children until they learned to perform with Magic.
- Learn Magic for pleasure / source of livelihood. Be the centre of attraction wherever you go. Be popular.
- Learn Magic the right way under expert personal guidance.
- If you are sincerely interested, "RAKSHIT - VASKAR MEMORIAL MAGIC SCHCOOL" (Sponsored by IBMA) will guide you systematically.

  **Presently magic classes are conducted every Sunday from 10 A.M. to 12 Noon at**
  ***ACCOUNTS RECREATION CLUB, UNIT - IV, BBSR.***

## Thanks for reading.

*We are grateful to our esteemed advertisers, supporters & well-wishers.*


| | |
|---|---|
| Cover designed & drawing by : | **Pragnya Pal / Sapan Biswas** |
| Printed at | **Magnum Printers**, 20 Janpath, Bapuji Nagar, |
| Published by | **INDRAJAAL BIKASH MAGIC ACADEMY**<br>Type - III - 273, New A.G. Colony, Bhubanewar - 751012<br>Phone ; 540336, E-mail <b_k_pal_@rediffmail.com> |